


ଭାରତ ଜ୍ଞାନ ବିଜ୍ଞାନ ସମିତି, ଓଡିଶା

# ଆମ ସ୍ୱାସ୍ଥ୍ୟ ଆମ ହାତରେ

ପ୍ରସ୍ତୁତି : ଡାକ୍ତର ମଦନ ମୋହନ ପ୍ରଧାନ
ଡାକ୍ତର ନିରୂପମା ମିଶ୍ର

ଭାରତ ଜ୍ଞାନ ବିଜ୍ଞାନ ସମିତି, ଓଡ଼ିଶା
ଏ/୧୨, (ଏଚ୍.ଆଇ.ଜି) ବରମୁଣ୍ଡା
ଭୁବନେଶ୍ୱର - ୩
ଫୋନ୍ ନଂ. ୪୦୦୮୯୧



ଏଇ ଗାଁ ଆମ ଜନମ ଭୂଇଁ
ଏଇ ଗାଁ ଆମ କରମ୍ ଭୂଇଁ
ରହିବା ସମସ୍ତେ ଏଠି ସୁଖରେ
ମରିବାନି କେହି ରୋଗ ଭୋକରେ
ନ ସଢ଼ିବା କେହିଏଠି ରୋଗରେ
ପୂରିଯିବ ଗାଁ ହସ ଖୁସିରେ
ଆମେ ଚାହିଁଲେ ଏସବୁ ହୋଇ ପାରିବ।
ଆସ ସମସ୍ତେ ଏକାଠି ହେବା।
ଏକ ମନ ହୋଇ କାମ କରିବା।
ସୁସ୍ଥ ସୁନ୍ଦର ଗାଁଟିଏ ଗଢ଼ି ତୋଳିବା।

ଶରଣକୁଳ ପଞ୍ଚାୟତରେ ମୋହନପୁର ଗାଁ। ଏହି ଗାଁରେ ରମେଶର ଘର। ଗାଁର ସମୂହ କାମ ପାଇଁ ରମେଶ ସବୁବେଳେ ଆଗଭର। ରମେଶ ଚିନ୍ତିତ। ଗାଁ ଓ ପଞ୍ଚାୟତ ସାରା ଅସ୍ୱାସ୍ଥ୍ୟକର ପରିବେଶ। ଲୋକଙ୍କ ସ୍ୱାସ୍ଥ୍ୟ ଜ୍ଞାନର ଅଭାବ। ଏଥିପାଇଁ ଲୋକମାନେ ଅତି ସାଧାରଣ ରୋଗ ବେମାରୀରେ ହରବର ହେଉଛନ୍ତି।

ରମେଶ ସାହସ ବାନ୍ଧିଛି।

ଲୋକଙ୍କୁ ମିଳାଇ ତା' ପଞ୍ଚାୟତକୁ ରୋଗମୁକ୍ତ କରିବ। ଗାଁ ଓ ପଞ୍ଚାୟତକୁ ସରସ ଓ ସୁନ୍ଦର କରି ଗଢ଼ି ତୋଳିବ। ରବିବାର ଦିନ ରମେଶ ତା'ର ପାଞ୍ଚ ଛ'ଜଣ ସାଂଗକୁ ଡାକିଲା। ନିଜ ମନ କଥା ସମସ୍ତଙ୍କୁ ବୁଝାଇ କହିଲା। ରମେଶଠାରୁ ସବୁ ଶୁଣି ଅଶୋକ କହିଲା - ଆମେ କେହି ଡାକ୍ତର ନୁହଁନ୍ତି। ଆମେ କେମିତି ସ୍ୱାସ୍ଥ୍ୟ କଥା ବିଚାର କରିବା ?

ରାଧା କହିଲା - ରମେଶ ଭାଇ ଠିକ୍ କହୁଛି।
ରୋଗ ହେଲେ ସିନା ଡାକ୍ତର ଦରକାର। କିନ୍ତୁ
ରୋଗର ବାଟ ଯଦି ଆମେ ବନ୍ଦ କରି ଦେବା ....
କମଳା କହିଲା - ସେ ଦିନ ଡାକ୍ତର ବାବୁ ଆସିଥିଲେ।

ସେ କହିଲେ ପରିଷ୍କାର ପରିଚ୍ଛନ୍ନ ପରିବେଶ
ଉପଯୁକ୍ତ ପିଇବା ପାଣି, ଉପଯୁକ୍ତ ଓ
ଆବଶ୍ୟକ ମୁତାବକ ଖାଦ୍ୟ, ସ୍ୱାସ୍ଥ୍ୟ ସମ୍ବନ୍ଧୀୟ
ସାଧାରଣ ଜ୍ଞାନ ଥିଲେ ଶହେରେ ପ୍ରାୟ
୯୦ ଭାଗ ରୋଗ ଦୂର ହୋଇଯିବ।
ରଘୁ କହିଲା - ଯଦି କଥାଟା ଏପରି ତେବେ



ଆମ ପଞ୍ଚାୟତ ପାଇଁ ଏକ ସ୍ୱାସ୍ଥ୍ୟ ଅଭିଯାନ
ଆରମ୍ଭ କରାଯାଉ ।

ଶରଣକୂଳ ପଞ୍ଚାୟତରେ ଉପସ୍ୱାସ୍ଥ୍ୟ କେନ୍ଦ୍ରଟିଏ ଅଛି । ସେଠାରେ ଝରଣା ଦିଦି ଥାଆନ୍ତି । ରାଧା, କମଳା, ଅଶୋକ, ରମେଶ ସ୍ୱାସ୍ଥ୍ୟ ଉପକେନ୍ଦ୍ରକୁ ଗଲେ । ଝରଣା ଦିଦିଙ୍କୁ ସ୍ୱାସ୍ଥ୍ୟ ଅଭିଯାନ କଥା ଜଣାଇଲେ । ଦିଦି କହିଲେ ଭାରି ଭଲ କଥା । ଆସନ୍ତାକାଲି ସମସ୍ତେ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରକୁ ଯିବା । ସେଠାରେ ଡ଼ାକ୍ତରବାବୁ ଆମକୁ ସବୁକଥା ଭଲ ଭାବରେ ବୁଝାଇ ଦେବେ ।

ଦିଦିଙ୍କ କଥା ଅନୁସାରେ ସମସ୍ତେ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରକୁ ଗଲେ । ଡ଼ାକ୍ତର ବାବୁ, ଦିଦି ଓ ରମେଶଠାରୁ ସବୁ କଥା ଶୁଣିଲେ । ଖୁସି ହୋଇ ପଞ୍ଚାୟତକୁ ନିଜେ ଆସି ସାହାଯ୍ୟ କରିବେ ବୋଲି ଭରସା ଦେଲେ । ଡ଼ାକ୍ତରବାବୁ କହିଲେ-ପଞ୍ଚାୟତ ପାଇଁ ସଂପୂର୍ଣ୍ଣ ସ୍ୱାସ୍ଥ୍ୟ ଯୋଜନା କଲା ପୂର୍ବରୁ କେତୋଟି ପ୍ରାଥମିକ କାମ କରିବାକୁ ପଡ଼ିବ ।

ସେଗୁଡ଼ିକ ହେଲା :-

୧. ପଞ୍ଚାୟତର ଲୋକସଂଖ୍ୟା, ପରିବାର ସଂଖ୍ୟା, ଘର ସଂଖ୍ୟା ଓ ବିଭିନ୍ନ ସ୍ୱାସ୍ଥ୍ୟ ସମସ୍ୟା ଓ ଗାଁ ପାଇଁ ଥିବା ସ୍ୱାସ୍ଥ୍ୟ ବ୍ୟବସ୍ଥା ସଂପର୍କରେ ଅବଗତ ହେବା । ଏଥିପାଇଁ ଏକ ସର୍ଭେ କରିବାକୁ ହେବ ।
୨. ଗାଁର ଭଲ ମନ୍ଦରେ ନିଷ୍ପତ୍ତି ନେଉଥିବା ମୁଖିଆ ଲୋକଙ୍କୁ ଏ ବିଷୟରେ ବୁଝାଇବାକୁ ହେବ ।
୩. ଗାଁର ମୁଖିଆମାନଙ୍କୁ ପରାମର୍ଶ କରି ସ୍ୱାସ୍ଥ୍ୟ ସମସ୍ୟାର ସମାଧାନ ପାଇଁ ଉପାୟ ବାହାର କରିବାକୁ ପଡ଼ିବ ।
୪. ଗାଁର ଶିକ୍ଷକ ବା ଜାଣିବା ଶୁଣିବା ବ୍ୟକ୍ତିଙ୍କ ସାହାଯ୍ୟରେ ଗାଁର ନକ୍ସାଟିଏ ତିଆରି କରି ସ୍ୱାସ୍ଥ୍ୟ ସମସ୍ୟାଗୁଡ଼ିକୁ ଦେଖାଇବାକୁ ହେବ । ଏହି ନକ୍ସା ସାହାଯ୍ୟରେ ଲୋକଙ୍କ ସ୍ୱାସ୍ଥ୍ୟ ସମସ୍ୟାକୁ ବୁଝାଇ ଦିଆଯାଇ ପାରିବ । ନକ୍ସାରେ ପଞ୍ଚାୟତର ଗାଁ, ବଡ଼ ରାସ୍ତା, ମୁଖ୍ୟ ଜାଗା, ନଈ, ନାଳ, ପୋଖରୀ, ପଞ୍ଚାୟତର ସୀମା ଆଦି ଦର୍ଶାଯାଇଥିବା ଆବଶ୍ୟକ

୫. ଗାଁ ଲୋକଙ୍କ ସହ ଆଲୋଚନା କରି ଗାଁର ସ୍ୱାସ୍ଥ୍ୟ ପାଇଁ ଏକ ନିର୍ଭରଯୋଗ୍ୟ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇ ପାରିବ।

ଡାକ୍ତରଙ୍କଠାରୁ ସବୁ ବୁଝାବୁଝି କରି ସମସ୍ତେ ଗାଁକୁ ଫେରି ଆସିଲେ। ୩୦/୪୦ ଜଣ ପାଠ ପଢୁଆ ପୁଅ ଝିଅଙ୍କୁ ଏକାଠି କଲେ। ସେମାନଙ୍କୁ ସବୁ କଥା ବୁଝାଇଲେ। ଘର ଘର ବୁଲି କିପରି ସର୍ଭେ କରିବାକୁ ହେବ, ସେ ବିଷୟରେ ତାଲିମ୍ ଦିଆଗଲା। ୧୧ଟି ଗାଁ ପାଇଁ ୧୧ଟି ସ୍ୱେଚ୍ଛାସେବୀ ଦଳରେ ବିଭକ୍ତ କରାଗଲା। ପ୍ରତି ଦଳରେ ଅନ୍ତତଃ ଜଣେ ଝିଅ ରହିଲେ। ପ୍ରତି ଦଳକୁ ପ୍ରାୟ ୭୦ ଘର ସର୍ଭେ କରିବାକୁ ପଡ଼ିଲା। ସର୍ଭେ ସମୟରେ ଏହି ସର୍ଭେ ଦଳଙ୍କ ସାଙ୍ଗରେ ପ୍ରତି ଗାଁରୁ ଅଧିକ ୧୦/୧୫ ଜଣ ସ୍ୱେଚ୍ଛାସେବୀ ସହଯୋଗ କରିଥିଲେ। ଦୁଇ ଦିନ ଭିତରେ ପଞ୍ଚାୟତର ସ୍ୱାସ୍ଥ୍ୟ ସର୍ଭେ ସରିଗଲା।

ସର୍ଭେ ସହିତ ସେମାନେ ପଞ୍ଚାୟତର ମୁଖିଆ, ବୟସ୍କ, ସ୍ତ୍ରୀ ଲୋକ, ୱାର୍ଡ଼ମେମ୍ବର, ଆଦିବାସୀ, ହରିଜନ ତଥା ଶିକ୍ଷକ ଆଦି ବିଭିନ୍ନ ସ୍ତରର ଲୋକଙ୍କ ସହ ଦଳଗତ ଆଲୋଚନା କଲେ। ଗାଁର ସ୍ୱାସ୍ଥ୍ୟ ଅବସ୍ଥା ସମ୍ବନ୍ଧରେ ସେମାନଙ୍କର ମତାମତ ତଥା ଅନ୍ୟାନ୍ୟ ତଥ୍ୟ ସଂଗ୍ରହ କଲେ।

ଲୋକମାନଙ୍କ ସହ ଆଲୋଚନା ସମୟରେ ପଞ୍ଚାୟତର କୂଅ ପୋଖରୀ, ଝରଣା, ନଈ, ଅଳିଆଗଦା, ନାଳ, ନର୍ଦ୍ଦମା, ନଳକୂଅ ଓ ପରିବେଶ ଆଦି ସଂପର୍କରେ ସେମାନଙ୍କର ଅନେକ ଧାରଣା ହେଲା।

ପଞ୍ଚାୟତର ସ୍ୱାସ୍ଥ୍ୟ ଯୋଜନା ପ୍ରସ୍ତୁତ କରିବା ପାଇଁ ପଞ୍ଚାୟତ ହାଇସ୍କୁଲରେ ସଭା ଡ଼କାହେଲା। ଆଗରୁ ସର୍ଭେ କରାଯାଇଥିବା ତଥ୍ୟ ଓ ଲୋକମାନଙ୍କ ସହ ଆଲୋଚନା ପରେ ମିଳିଥିବା ତଥ୍ୟକୁ ସଭାରେ ଆଲୋଚନା ଓ ବିଶ୍ଳେଷଣ କରାଗଲା।

ରମେଶ କଳାପଟାରେ ପଞ୍ଚାୟତର ନକ୍ସାଟି ଆଙ୍କିଲା। ପଞ୍ଚାୟତର ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ତଥ୍ୟକୁ ପ୍ରାଞ୍ଜଳ ଭାବରେ ନକ୍ସାରେ ଲେଖି ବୁଝାଇଲା।

ତାପରେ ପଞ୍ଚାୟତ ପାଇଁ ସ୍ୱାସ୍ଥ୍ୟ ଯୋଜନାଟିଏ ପ୍ରସ୍ତୁତ କରାଗଲା।

ଶରଣକୂଳ ପଞ୍ଚାୟତର ସ୍ୱାସ୍ଥ୍ୟ ସର୍ଭେରୁ ମିଳିଥିବା ତଥ୍ୟ :-

ମୋଟ ଗାଁ ସଂଖ୍ୟା - ୧୧



୧) ସମୁଦାୟ ଘର ସଂଖ୍ୟା - ୬୯୨

୨) ସମୁଦାୟ ଲୋକ ସଂଖ୍ୟା - ୪୧୦୬

ସବର୍ଣ୍ଣ - ପୁରୁଷ - ୧୮୪୨ ମହିଳା - ୧୬୮୫

ହରିଜନ - ପୁରୁଷ - ୨୮୩ ମହିଳା - ୨୨୬

ଗିରିଜନ - ପୁରୁଷ - ୯ . ମହିଳା - ୧୧ . .

ମୋଟ - ପୁରୁଷ - ୨୧୩୪ ମୋଟ - ମହିଳା - ୧୯୨୨



୩) ଶିଶୁ ସଂଖ୍ୟା :-

| | ପୁଅ | ଝିଅ | ମୋଟ |
|---|---|---|---|
| ୦ ରୁ ୧ ବର୍ଷ ବୟସର | ୬୦ | ୪୯ | ୧୦୯ |
| ୧ ଠାରୁ ୫ ବର୍ଷ ବୟସର | ୨୭୯ | ୨୫୨ | ୫୩୧ |
| ୦ ଠାରୁ ୫ ବର୍ଷ ବୟସର | ୩୩୯ | ୩୦୧ | ୬୪୦ |

୪) ୫ ବର୍ଷରୁ ସାନ ପିଲାଙ୍କ କ୍ଷେତ୍ରରେ ପ୍ରତିଷେଧକ ଟିକାଦାନ

(କ) ସଂପୂର୍ଣ୍ଣ ଟିକାଦାନ ହୋଇଛି - ୫୧

(ଖ) ଆଂଶିକ ଟିକାଦାନ ହୋଇଛି - ୨୫୭

(ଗ) ଆଦୌ ଟିକାଦାନ ହୋଇ ନାହିଁ - ୨୯୪

୫) ଗର୍ଭବତୀ ମହିଳା :-

ଗତ ବର୍ଷ ଭିତରେ

(କ) ଟିଟାନସ୍ ଟିକା ସଂପୂର୍ଣ୍ଣ ଭାବେ ନେଇଛନ୍ତି - ୨୧

(ଖ) ଟିଟାନସ୍ ଟିକା ଆଂଶିକ ଭାବେ ନେଇଛନ୍ତି - ୧୦

(ଗ) ଟିଟାନସ୍ ଟିକା ଆଦୌ ନେଇ ନାହାନ୍ତି - ୧୫

୬) ଗତ ସପ୍ତାହ ଭିତରେ ହୋଇଥିବା ତରଳ ଝାଡ଼ା - ସଂଖ୍ୟା

ପୁରୁଷ - ୨୧, ମହିଳା - ୨୪, ମୋଟ - ୪୫

ଗତ ବର୍ଷଙ୍କ ଭିତରେ କାମଳ ରୋଗୀ ସଂଖ୍ୟା

ପୁରୁଷ - ୨୫, ମହିଳା - ୧୮, ମୋଟ - ୪୩

୭) ଦୁଇ ସପ୍ତାହରୁ ଅଧିକ ଦିନ ହୋଇଥିବା ଜ୍ୱର - ୧୧୩

୮) ମୃତ୍ୟୁ ସମ୍ବନ୍ଧୀୟ ତଥ୍ୟ :-

ଗତ ବର୍ଷକ ଭିତରେ ହୋଇଥିବା ମୃତ୍ୟୁ ସଂଖ୍ୟା

(କ) ସ୍ୱାଭାବିକ ମୃତ୍ୟୁ - ୧୧

(ଖ) ଜ୍ୱର - ୭

(ଗ) ଝାଡ଼ାରୋଗ - ୮

(ଘ) ହୃଦରୋଗ - ୪

(ଙ) ଆତ୍ମହତ୍ୟା - ୧

(ଚ) ଗର୍ଭଜନିତ ମୃତ୍ୟୁ - ୧

(ଛ) କାମଳ - ୪

(ଜ) ଦୁର୍ଘଟଣା - ୧

(ଝ) ମଲାଚ୍ଛିଆ - ୧୫



୯) ପିଇବା ପାଣି :-

(କ) କେବଳ ନଳକୂଅ ପାଣି ପିଅନ୍ତି - ୬୦ ପରିବାର

(ଖ) କେବଳ କୂଅ ପାଣି ପିଅନ୍ତି - ୧୩୯ ପରିବାର

(ଗ) କୂଅ ଓ ନଳକୂଅ ଉଭୟ ପାଣି ପିଅନ୍ତି - ୨୭୬ ପରିବାର

(ଘ) ପୋଖରୀ ପାଣି ପିଅନ୍ତି - ୨୧୭ ପରିବାର

୧୦) ପାଇଖାନା ବ୍ୟବସ୍ଥା :-

(କ) ଘରେଥିବା ପାଇଖାନା ବ୍ୟବହାର କରୁଛନ୍ତି - ୧୫୫

(ଖ) ସାମୁହିକ ପାଇଖାନା ବ୍ୟବହାର କରୁଛନ୍ତି - ୦

(ଗ) ପଦାକୁ ଯାଉଛନ୍ତି - ୫୩୭

(ଘ) ପାଇଖାନା ଚାହୁଁଛନ୍ତି - ୩୭୮

(ଡ) ନିଜ ଖର୍ଚ୍ଚରେ - ୩୭, ବିନା ଖର୍ଚ୍ଚରେ ୩୪୧

୧୧) ପ୍ରସବ ସମ୍ବନ୍ଧୀୟ :-

(କ) ତାଲିମ୍ ପ୍ରାପ୍ତ ଧାଈ ଦ୍ୱାରା ପ୍ରସବ କରାଇଛନ୍ତି - ୧୩

(ଖ) ଅଣ ତାଲିମ ପ୍ରାପ୍ତ ଧାଈ ଦ୍ୱାରା ପ୍ରସବ କରାଇଛନ୍ତି - ୨୦

(ଗ) ମହିଳା ସ୍ୱାସ୍ଥ୍ୟକର୍ମୀଙ୍କ ଦ୍ୱାରା ପ୍ରସବ କରାଇଛନ୍ତି - ୬

(ଘ) ଡ଼ାକ୍ତରଖାନାରେ ପ୍ରସବ କରାଇଛନ୍ତି -୭



୧୨) ଗତ ବର୍ଷକ ଭିତରେ ଶିଶୁ ଜନ୍ମ - ୨୦୩

(କ) ୦ ରୁ ୧ ବର୍ଷ ବୟସ ଭିତରେ ଶିଶୁ ମୃତ୍ୟୁ - ୧୪

(ଖ) ୧ ରୁ ୫ ବର୍ଷ ବୟସ ଭିତରେ ଶିଶୁ ମୃତ୍ୟୁ - ୫

(ଗ) ୦ ରୁ ୬ ମାସ ବୟସ ଭିତରେ ଶିଶୁ ମୃତ୍ୟୁ - ୫




୧୩) ଚିକିତ୍ସା ପାଇଁ ଥିବା ସୁବିଧା ସୁଯୋଗର ବ୍ୟବହାର

(କ) ସରକାରୀ ଡାକ୍ତରଖାନାକୁ ଯାଆନ୍ତି - ୧୮୫

(ଖ) ଘରୋଇ ଡାକ୍ତରଙ୍କ ପାଖକୁ ଯାଆନ୍ତି - ୩୬୬

(ଗ) ହୋମିଓପାଥି ଡାକ୍ତରଙ୍କ ପାଖକୁ ଯାଆନ୍ତି - ୪୩

(ଘ) କବିରାଜି ଡାକ୍ତରଙ୍କ ପାଖକୁ ଯାଆନ୍ତି - ୪୬

(ଙ) ଝଡ଼ା ଫୁଙ୍କା କରାନ୍ତି - ୪୬

୧୪. ସାକ୍ଷରତା ସମ୍ବନ୍ଧୀୟ ତଥ୍ୟ :-

| ୯ରୁ ୪୫ ବର୍ଷ ଭିତରେ | ନିରକ୍ଷର | ନବସାକ୍ଷର |
|---|---|---|
| ପୁରୁଷ | ୧୨୩ | ୫୯ |
| ମହିଳା | ୩୩୫ | ୧୦୮ |
| ମୋଟ | ୪୯୮ | ୧୬୭ |

୧୫. ରୋଗ ସମ୍ବନ୍ଧୀୟ ତଥ୍ୟ ::

| | ପୁରୁଷ | ମହିଳା | ମୋଟ |
|---|---|---|---|
| ଜଣ୍ଡିସ୍ ରୋଗୀ (କାମଳ) | ୨୫ | ୧୮ | ୪୩ |
| ପାଳିଜ୍ବର | ୧୧୮ | ୯୯ | ୨୧୭ |
| ବାତଜ୍ବର ରୋଗୀ | ୫୭ | ୨୮ | ୮୫ |
| କାଲୁଆ ଛଉ | ୧୧ | ୧୪ | ୨୫ |

୧୬. ଏ. ଏନ୍. ଏମ୍. ସେଣ୍ଟର (ସ୍ବାସ୍ଥ୍ୟ ଉପକେନ୍ଦ୍ର) - ୧

୧୭. ପ୍ରାଥମିକ ସ୍ବାସ୍ଥ୍ୟକେନ୍ଦ୍ରର ଦୂରତା - ୧୦ କିଲୋମିଟର

୧୮. ନିକଟତମ ଡ଼ାକ୍ତରଙ୍କ ଦୂରତା - ୪ କିଲୋମିଟର

୧୯.ପୋଖରୀ :

(କ) ପିଇବା ପାଇଁ - ୧ (ଖ) ଗାଧୁଆ ପାଇଁ - ୩ (ଗ) ଜଳ ସେଚନ ପାଇଁ -୨ (ଘ) ପଶୁ ମାନଙ୍କ ପାଇଁ -୧

୨୦. କୂଅ:— (କ) ସର୍ବ ସାଧାରଣ କୂଅ - ୧୦ (ଖ) ବ୍ୟକ୍ତିଗତ କୂଅ - ୩୪ (ଗ) ଜଳ ସେଚନ ପାଇଁ ୩୪

ଏହି ଆଲୋଚନାକୁ ସେମାନେ ପଞ୍ଚାୟତ ସରପଞ୍ଚ, ସମିତି ସଭ୍ୟ, ଓ୍ବାର୍ଡ଼ମେମ୍ବର, ଉପସ୍ବାସ୍ଥ୍ୟକେନ୍ଦ୍ରର ଦିଦି, ଗ୍ରାମସେବକ, ସବୁ ଗାଁର ମୁଖିଆ ମୁଖିଆ ଲୋକ, ମନ୍ଦିର ପୂଜାରୀ, ଗାଁ ଶିକ୍ଷକ ତଥା ସବୁ ସ୍ବେଚ୍ଛାସେବୀଙ୍କୁ ଡ଼ାକିଥିଲେ। ପ୍ରାଥମିକ ସ୍ବାସ୍ଥ୍ୟ କେନ୍ଦ୍ରର ଡ଼ାକ୍ତରବାବୁଙ୍କୁ ନିମନ୍ତ୍ରଣ କରିଥିଲେ। ଆଲୋଚନାରୁ ସ୍ବାସ୍ଥ୍ୟ ସମସ୍ୟାଗୁଡ଼ିକର ମୁଖ୍ୟ କାରଣ ସବୁ ନିମ୍ନମତେ ଜଣା ପଡ଼ିଲା।

୧. ଛୋଟ ଘରେ ବେଶି ଲୋକ ରହୁଛନ୍ତି।

୨. ଆବଶ୍ୟକ ମୁତାବକ ପାଣିର ଅଭାବ।

୩. ବିଶୁଦ୍ଧ ପାନୀୟ ଜଳର ଅଭାବ।

୪. ଆବଶ୍ୟକ ମୁତାବକ ପୁଷ୍ଟିକର ଖାଦ୍ୟର ଅଭାବ।

୫. ପିଲାମାନଙ୍କୁ ପ୍ରତିଷେଧକ  ଟିକା ଦେବା ପାଇଁ ସଚେତନତାର ଅଭାବ।

୬. ଗର୍ଭବତୀ ମହିଳାମାନଙ୍କ ପ୍ରତି ଆବଶ୍ୟକ ଯତ୍ନର ଅଭାବ। ପ୍ରସବ ପରେ ଶିଶୁର ଯତ୍ନ ନେବା ସମ୍ବନ୍ଧରେ ସାଧାରଣ ଜ୍ଞାନର ଅଭାବ।

୭. ଅସ୍ୱାସ୍ଥ୍ୟକର ଘର ଓ ପରିବେଶ।

୮. ପାଇଖାନାର ଅଭାବ। ପାଇଖାନା ବ୍ୟବହାର ପାଇଁ ମନୋଭାବର ଅଭାବ।

୯. ଅଳିଆ, ଆବର୍ଜନା ଓ ଅପରିଷ୍କାର ପାଣି ଠିକ୍ ଭାବରେ ନିଷ୍କାସିତ ନ ହେବା।

୧୦. ମଶା, ମାଛି ଅସରପା ଆଦି ରୋଗ ବାହକ କୀଟ ପତଙ୍ଗମାନଙ୍କର ପ୍ରାଦୁର୍ଭାବ। ସେମାନଙ୍କର କବଳରୁ ରକ୍ଷା ପାଇବା ପାଇଁ ସଚେତନତାର ଅଭାବ।

୧୧. ତରଳଝାଡ଼ା ଭଳି ସାଧାରଣ ରୋଗ ଚିକିତ୍ସା ପାଇଁ ସାଧାରଣ ଜ୍ଞାନର ଅଭାବ।

୧୨. ନିକଟତମ ସ୍ୱାସ୍ଥ୍ୟ କେନ୍ଦ୍ରରେ ଠିକ୍ ସମୟରେ ନ ପହଞ୍ଚି ଝଡ଼ାଫୁଙ୍କା ଆଦିରେ ସମୟ ନଷ୍ଟ କରିବା।

୧୩. କର୍ମକ୍ଷେତ୍ରରେ ଅସ୍ୱାସ୍ଥ୍ୟକର ପରିବେଶ।

୧୪. ଶିକ୍ଷାର ଅଭାବ ଯୋଗୁଁ ସାଧାରଣ ସ୍ୱାସ୍ଥ୍ୟ ଜ୍ଞାନର ଅଭାବ।

ଏସବୁ ସ୍ୱାସ୍ଥ୍ୟ ସମସ୍ୟାକୁ ନକ୍ସା ଆକାରରେ କଳାପଟାରେ ଦେଖିଲା ପରେ ସମସ୍ତଙ୍କ ମୁଣ୍ଡରେ ଚିନ୍ତା ପଶିଲା। ସତରେ କଣ ଗାଁରେ ଏତେ ସମସ୍ୟା ଅଛି? ଏସବୁ ସ୍ୱାସ୍ଥ୍ୟ ସମସ୍ୟାର ସମାଧାନ ପାଇଁ ଆଲୋଚନା ଚାଲିଲା। ଏହି ସମୟରେ ଡ଼ାକ୍ତରବାବୁ ଆସି ପହଞ୍ଚିଲେ। ତାଙ୍କୁ ସବୁ ବିଷୟ ଜଣାଇ ଦିଆଗଲା। ସବୁ କଥା ଶୁଣି ଡ଼ାକ୍ତରବାବୁ କହିଲେ ଏସବୁ ସମସ୍ୟାଗୁଡ଼ିକର ସମାଧାନ ପାଇଁ ଉପାୟ ଆମ ପାଖରେ ଅଛି। କିନ୍ତୁ ଏଥିପାଇଁ ଆମର ମନୋବଳ ଓ ଏକତା ଏକାନ୍ତ ଆବଶ୍ୟକ।

ସମସ୍ତେ ଏକ ସ୍ୱରରେ କହିଲେ ଆମେ ଏସବୁ ପାଇଁ ରାଜି !
ଡ଼ାକ୍ତରବାବୁ କହିଲେ ପ୍ରଥମେ ପଞ୍ଚାୟତ ପାଇଁ
ଗୋଟିଏ ସ୍ୱାସ୍ଥ୍ୟ କମିଟି କରାଯାଉ । ତାପରେ
ପଞ୍ଚାୟତର ପ୍ରତି ଗାଁ ପାଇଁ ଗୋଟିଏ ଲେଖାଁଏ
ସ୍ୱାସ୍ଥ୍ୟକମିଟି ଗଠନ କରାଯିବ ।



ଗୋପାଳ : ଡ଼ାକ୍ତରବାବୁ,ସ୍ୱାସ୍ଥ୍ୟ କମିଟି ବିଷୟରେ
ଆମକୁ ଦୟାକରି, ବୁଝାଇ ଦିଅନ୍ତୁ ।
ଡ଼ାକ୍ତରବାବୁ : ପଞ୍ଚାୟତର ସବୁ ସ୍ତରରୁ (ହରିଜନ
ଆଦିବାସୀ, ଗରୀବ, ଧନୀ ନିର୍ବିଶେଷରେ) ୧୦/୧୫
ଜଣ ନିଷ୍ଠାପର ଲୋକଙ୍କୁ ନେଇ ସ୍ୱାସ୍ଥ୍ୟ କମିଟି
ଗଢ଼ିବାକୁ ହେବ । କମିଟିରେ ୨ ଜଣ ସକ୍ରିୟ
ସଭ୍ୟ ଯଥାକ୍ରମେ ସଂଯୋଜକ ଓ ସହ ସଂଯୋଜକ
ଭାବରେ କାମ କରିବେ । ଏ ଦୁଇ ଜଣଙ୍କ ଭିତରୁ
ଜଣେ ପୁରୁଷ ଓ ଜଣେ ମହିଳା ହେଲେ
ଉତ୍ତମ । ଜଣେ ହିତାକାଂକ୍ଷୀ ବୟସ୍କ ବ୍ୟକ୍ତି
ବା ସରପଞ୍ଚ ନିଜେ ସ୍ୱାସ୍ଥ୍ୟ କମିଟିର ସଭାପତି ରହିବେ ।

ଏହିପରି ଭାବରେ ପ୍ରତି ଗାଁ ପାଇଁ ଗୋଟିଏ ଗୋଟିଏ କମିଟି କରାଯିବ।

ହରି କହିଲା - ଆଜି ଆମେ ଏକାଠି ହୋଇଛେ। ତେଣୁ ପଞ୍ଚାୟତ ସ୍ୱାସ୍ଥ୍ୟ କମିଟି ଆଜି ଗଠନ କରିଦେବା ଭଲ। ବିଭିନ୍ନ ଗାଁରୁ ପ୍ରତିନିଧିମାନଙ୍କର ନାମ ତାଲିକା କରାଗଲା। ସକ୍ରିୟ ମହିଳା କର୍ମୀମାନଙ୍କୁ ବଛାଗଲା। ଏମାନଙ୍କ ବ୍ୟତୀତ ସମିତି ସଭ୍ୟ ଓ ଶିକ୍ଷକ ପ୍ରତିନିଧି ବି କମିଟିରେ ରହିଲେ। ସରପଞ୍ଚଙ୍କୁ ସଭାପତି ରୂପେ ବଛାଗଲା। ସମସ୍ତଙ୍କ ମତ ଅନୁସାରେ ରମେଶ ଓ କମଳା ଯଥାକ୍ରମେ ସଂଯୋଜକ ଓ ସହ ସଂଯୋଜିକା ରହିଲେ।

ଡାକ୍ତରବାବୁ କହିଲେ, କମିଟି ଗଢ଼ିଦେବା ବଡ଼ କଥା ନୁହେଁ। ଏମିତି ଅନେକ କମିଟି ହେଉଛି। ସଠିକ୍ କାମ ନ ଜାଣି କେହି ଠିକ୍ ଭାବେ ଯୋଜନାକୁ କାର୍ଯ୍ୟକାରୀ କରିପାରୁ ନାହାନ୍ତି। ତେଣୁ କମିଟିର ସଭ୍ୟମାନେ କାମଗୁଡ଼ିକ ସମ୍ବନ୍ଧରେ ଭଲ ଭାବରେ ଅବଗତ ହେବା ଏକାନ୍ତ ଆବଶ୍ୟକ।

ସମସ୍ତେ ଡାକ୍ତରବାବୁଙ୍କ କଥାରେ ସମ୍ମତ ହେଲେ। ଡାକ୍ତରବାବୁ କମିଟିର କାମଗୁଡ଼ିକୁ ଗୋଟି ଗୋଟି କରି ବୁଝାଇ ଦେଲେ।

୧. ପଞ୍ଚାୟତର ସ୍ୱାସ୍ଥ୍ୟ ସମସ୍ୟାକୁ ଜାଣି ସ୍ୱାସ୍ଥ୍ୟ ଯୋଜନା ପ୍ରସ୍ତୁତ କରିବା।

୨. ଯୋଜନାର ସଫଳ ରୂପାୟନ ପାଇଁ ପ୍ରତି ୧୫ ଦିନରେ ଥରେ ଏକାଠି ବସି ଆଲୋଚନା କରିବା।

୩. ଭୁଲଭଟକାକୁ ଦେଖି ତା'ର ସଂଶୋଧନ ପାଇଁ ଉପାୟ ବାହାର କରିବା।

୪. ଉପସ୍ୱାସ୍ଥ୍ୟ କେନ୍ଦ୍ର ଓ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ସହ ସଂପର୍କ ରଖିବା।

୫. ପଞ୍ଚାୟତକୁ ଆସୁଥିବା ସରକାରୀ ଅନୁଦାନକୁ ସ୍ୱାସ୍ଥ୍ୟ ପାଇଁ ଠିକ୍ ଭାବରେ ଉପଯୋଗ କରିବା।

୬. ସ୍ୱାସ୍ଥ୍ୟର ବିଭିନ୍ନ ଦିଗ ବିଷୟରେ ପଞ୍ଚାୟତର ସବୁ ଲୋକଙ୍କୁ ସଚେତନ କରାଇବା।

୭. ପଞ୍ଚାୟତର ଜନ ସହଯୋଗରେ ସ୍ୱାସ୍ଥ୍ୟକର ପରିବେଶ ସୃଷ୍ଟି କରିବା।

୮. ପ୍ରତି ଗାଁର ସ୍ୱାସ୍ଥ୍ୟ ପରିବେଶକୁ ବଜାୟ ରଖିବା ପାଇଁ ଗାଁ କମିଟିକୁ ଦାୟିତ୍ୱ ଦେବା।

୯.  କମିଟିର ନିଷ୍ପତିକୁ ଏକ ଖାତାରେ ଲିପିବଦ୍ଧ କରି ରଖିବା।
୧୦.  ଯୋଜନା ଅନୁସାରେ କାର୍ଯ୍ୟକ୍ରମର ପ୍ରଗତିକୁ ମଝିରେ ମଝିରେ ମୂଲ୍ୟାୟନ କରିବା।
 ମୂଲ୍ୟାୟନକୁ ଲକ୍ଷ କରି ନୂତନ ପଦକ୍ଷେପମାନ ଗ୍ରହଣ କରିବା।
ହରିବାବୁ କହିଲେ ଏବେ ଚାଲ,ଆମେ ପଞ୍ଚାୟତ ପାଇଁ ସ୍ୱାସ୍ଥ୍ୟ ଯୋଜନାଟିଏ ପ୍ରସ୍ତୁତ କରିବା।

## ଶରଣକୂଳ ପଞ୍ଚାୟତ ପାଇଁ କରାଯାଇଥିବା ସ୍ୱାସ୍ଥ୍ୟ ଯୋଜନା

ପଞ୍ଚାୟତ ସ୍ୱାସ୍ଥ୍ୟ କମିଟିରେ ନିମ୍ନଲିଖିତ ନିଷ୍ପତିମାନ ନିଆଗଲା

**୧. ଗ୍ରାମ୍ୟ କମିଟି ଗଠନ :**

ପଞ୍ଚାୟତର ୧୧ଟି ଗାଁ। ପ୍ରତି ଗାଁର ୧୦/୧୫ ଜଣ ସକ୍ରିୟ ସଭ୍ୟଙ୍କୁ ନେଇ ଗାଁ କମିଟି ୧୫ ଦିନ ଭିତରେ କରିବା ପାଇଁ ନିଷ୍ପତି ନିଆଗଲା। ପଞ୍ଚାୟତ କମିଟିରେ ଥିବା ଗ୍ରାମ୍ୟ ପ୍ରତିନିଧିମାନେ ନିଜ ନିଜ ଗାଁରେ ଗାଁ କମିଟି ଗଠନ ପାଇଁ ଦାୟିତ୍ୱ ନେବେ ବୋଲି ସ୍ଥିର କରାଗଲା।

**୨. ସ୍ୱାସ୍ଥ୍ୟ କମିଟିର ସଭ୍ୟମାନଙ୍କ ଅବଗତି ନିମନ୍ତେ ଆଲୋଚନାମାଳା :**

ପଞ୍ଚାୟତ ଓ ଗାଁ ସ୍ୱାସ୍ଥ୍ୟ କମିଟିର ସଭ୍ୟମାନଙ୍କୁ ସ୍ୱାସ୍ଥ୍ୟ ଅବସ୍ଥା ଓ ସ୍ୱାସ୍ଥ୍ୟ ଯୋଜନା ସଂପର୍କରେ ପୂର୍ଣ୍ଣ ଧାରଣା ଦେବା ପାଇଁ ସରଳ ଭାଷାରେ ଏକ ହାତ ଲେଖା ପୁସ୍ତକ ଲେଖିବା ପାଇଁ ସ୍ଥିର ହେଲା। ପ୍ରତି କମିଟି ପାଇଁ ଗୋଟିଏ ଗୋଟିଏ

ପୁସ୍ତକ ଯୋଗାଇ ଦିଆଯିବ। କମିଟିରେ ବହିଟି ପଢ଼ି ଆଲୋଚନା କରାଯିବ। ସରପଞ୍ଚ, ଗାଁ ସ୍ୱାସ୍ଥ୍ୟ ସଂଯୋଜକ ଓ ସହ ସଂଯୋଜକ ଏହି କାର୍ଯ୍ୟକ୍ରମର ଦାୟିତ୍ୱ ନେଲେ।

**୩. ସ୍ୱାସ୍ଥ୍ୟ ସଚେତନ ଦଳ :**

ଯୋଜନା କାର୍ଯ୍ୟକାରୀ ପାଇଁ ୫ ଜଣ ଶିକ୍ଷିତ ବ୍ୟକ୍ତିଙ୍କୁ ନେଇ ଏକ ସ୍ୱାସ୍ଥ୍ୟ ସଚେତକ ଦଳ ଗଠନ କରାଗଲା। ଏମାନେ ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ଆଲୋଚନା କରାଇବେ। ସେମାନେ ୭ ଦିନ ଭିତରେ ବହିଟି ତିଆରି କରିବାର ଦାୟିତ୍ୱ ନେଲେ। ବହି ତଆରି ହେବାର ୫ ଦିନ ଭିତରେ ସବୁ କମିଟିର ସଭ୍ୟମାନଙ୍କ ସହ ଆଲୋଚନା କରାଯିବ। ଏହିପରି ଭାବରେ ୧୦ ରୁ ୧୫ ଦିନ ଭିତରେ ସବୁ ଗାଁ କମିଟିର ସଭ୍ୟମାନଙ୍କୁ ସ୍ୱାସ୍ଥ୍ୟ ଯୋଜନା ବିଷୟରେ ବିସ୍ତୃତ ଭାବରେ ବୁଝାଇବା ପାଇଁ ଯୋଜନା କରାଗଲା। ଆଲୋଚନା ସମୟରେ ପ୍ରତି ଗାଁରେ ଥିବା ଆବଶ୍ୟକତାକୁ ସ୍ୱାସ୍ଥ୍ୟ ଯୋଜନାରେ ଅର୍ନ୍ତଭୁକ୍ତ କରିବା ପାଇଁ ନିଷ୍ପତ୍ତି ନିଆଗଲା।

**୪. ସ୍ୱାସ୍ଥ୍ୟ ସଚେତନତା ପାଇଁ ଅଭିଯାନ :**

ସ୍ୱାସ୍ଥ୍ୟ ଯୋଜନାର କାର୍ଯ୍ୟକାରିତା ପାଇଁ ଆବାଳବୃଦ୍ଧବନିତା ସହଯୋଗ କରିବା ଆବଶ୍ୟକ। ସମସ୍ତଙ୍କୁ ଏ ବିଷୟରେ ସଚେତନ କରାଇବା ଜରୁରୀ ବୋଲି ଅନୁଭବ କରାଗଲା। ଗାଁ ଲୋକଙ୍କ ସ୍ୱାସ୍ଥ୍ୟ ସଚେତନତା ପାଇଁ ନିମ୍ନଲିଖିତ ଉପାୟମାନ ଚିନ୍ତା କରାଗଲା।

(କ) ଗୀତ, ନାଚ ଓ ପଥପ୍ରାନ୍ତ ନାଟକ :

ସ୍ୱାସ୍ଥ୍ୟକର ପରିବେଶ, ପାନୀୟ ଜଳ, ପରିମଳ ବ୍ୟବସ୍ଥା ଓ ଶିଶୁର ସ୍ୱାସ୍ଥ୍ୟ, ନାରୀର ସ୍ୱାସ୍ଥ୍ୟ ଓ ଅଧିକାର, ପ୍ରତିଷେଧକ ବ୍ୟବସ୍ଥା, ନବାଗତ ଶିଶୁ ପାଇଁ ପ୍ରସ୍ତୁତି, ଗର୍ଭାବସ୍ଥାରେ ସ୍ତ୍ରୀ ପାଇଁ ପୁରୁଷର ଦାୟିତ୍ୱ, କନ୍ୟାଶିଶୁକୁ ସମ୍ମାନ ଓ କନ୍ୟାଶିଶୁର ଯତ୍ନ , କିଶୋରୀ ଅବସ୍ଥା, ଛୋଟ ପରିବାରର ଆବଶ୍ୟକତା, ଆମ ଗାଁର ସ୍ୱାସ୍ଥ୍ୟ ପାଇଁ ଆମର ନିଷ୍ପତ୍ତି ଓ କର୍ତ୍ତବ୍ୟ ଆଦି ବିଭିନ୍ନ ବିଷୟରେ ଗୀତ ଓ ନାଟକମାନ ଲେଖାଯିବ। ପଞ୍ଚାୟତର ସ୍ୱେଚ୍ଛାସେବୀମାନେ ବିଭିନ୍ନ ଗାଁରେ ନାଟକ ପ୍ରଦର୍ଶନ କରିବେ

ଓ ଗଣ ସଂଗୀତ ଗାନ କରିବେ। ଏଥିପାଇଁ ଗାଁ ଗାଁରେ ପ୍ରତିଯୋଗିତା ହେବ। ପ୍ରଥମ ଦ୍ୱିତୀୟ ସ୍ଥାନ ଗ୍ରହଣ କରିଥିବା ଗାଁମାନଙ୍କୁ ପଞ୍ଚାୟତ ତରଫରୁ ପୁରସ୍କାର ଦିଆଯିବ।

ଏହି କାର୍ଯ୍ୟକ୍ରମ ପାଇଁ ପ୍ରତି ଗାଁ କମିଟିର ସଭ୍ୟମାନେ ନିଜ ନିଜ ଗାଁ ପାଇଁ ଦାୟିତ୍ୱ ଗ୍ରହଣ କରିବେ ବୋଲି ନିଷ୍ପତ୍ତି ନିଆଗଲା।

ଏହା ବ୍ୟତୀତ

(ଖ) ସ୍ୱାସ୍ଥ୍ୟ ପ୍ରଦର୍ଶନୀ, ପୋଷ୍ଟର ପ୍ରଦର୍ଶନୀ, କାନ୍ଥଲେଖା, ଗାଁର ମୁଖ୍ୟ ଛକମାନଙ୍କରେ ବଡ଼ ବଡ଼ ଅକ୍ଷରରେ ସ୍ୱାସ୍ଥ୍ୟ ସଂଦେଶ ଲେଖିବା, ସ୍ୱାସ୍ଥ୍ୟ ସଭା ଆଦି, ନାନାପ୍ରକାର କାର୍ଯ୍ୟକ୍ରମ କରିବା ପାଇଁ ଯୋଜନା କରାଗଲା।

(ଗ) ପଞ୍ଚାୟତ ପରିମଳ ସପ୍ତାହ, ପ୍ରତି ଗାଁ କମିଟି ଓ ଗାଁ ଲୋକମାନଙ୍କ ସହଯୋଗରେ ପଞ୍ଚାୟତକୁ ପରିଷ୍କାର କରିବା। ଏଥିପାଇଁ ଏକ ସପ୍ତାହ ଧରି ପରିମଳ ସପ୍ତାହ ପାଳନ କରାଯିବ।

(ଘ) ଗାଁରେ ସ୍ୱାସ୍ଥ୍ୟ ସଂପର୍କୀୟ ଭିଡ଼ିଓ ଓ ସିନେମା ଦେଖାଇବା ପାଇଁ ନିଷ୍ପତ୍ତି ନିଆଗଲା।

(ଙ) ସବୁ ଲୋକଙ୍କୁ ସ୍ୱାସ୍ଥ୍ୟର ବିଭିନ୍ନ ଦିଗ ବିଷୟରେ ସଚେତନ କରାଇବା ପାଇଁ ଆଲୋଚନା ଚକ୍ରର ଆୟୋଜନ ପାଇଁ ନିଷ୍ପତ୍ତି ନିଆଗଲା।

୫. ସ୍ୱାସ୍ଥ୍ୟ ସଚେତନ ପୁସ୍ତିକାଗୁଡ଼ିକୁ ନେଇ ଆଲୋଚନା :

ଏଥିପାଇଁ ଭାରତ ଜ୍ଞାନ ବିଜ୍ଞାନ ସମିତି ଦ୍ୱାରା ପ୍ରାୟ ୧୪ଟି ସ୍ୱାସ୍ଥ୍ୟ ସଚେତନ ପୁସ୍ତିକା ସରଳ ଭାଷାରେ ତିଆରି କରାଯାଇଛି। ଏଗୁଡ଼ିକରେ ମୁଖ୍ୟତଃ ନିମ୍ନଲିଖିତ ବିଷୟବସ୍ତୁମାନ ଅଛି। ଯଥା -

## ସ୍ୱାସ୍ଥ୍ୟ ସଚେତନ ପୁସ୍ତିକା

୧. ଆମେ ଅସୁସ୍ଥ ହେଉ କାହିଁକି ?
୨. ଜଳ ଦ୍ୱାରା ସଂକ୍ରମିତ ରୋଗ
୩. ପିଇବା ପାଣିକୁ ବିଶୁଦ୍ଧ ରଖିବା କିପରି
୪. ପରିମଳ (ଅଳିଆରୁ ସଂପଦ)
୫. ଅନ୍ଧାରରୁ ଆଲୋକ
୬. ନବାଗତ ଶିଶୁଟି ପାଇଁ ପ୍ରସ୍ତୁତି
୭. ପସନ୍ଦ ଅନୁସାରେ ବାଛି ପାରିବା
୮. ନାରୀର ସ୍ୱାସ୍ଥ୍ୟ ଓ ନାରୀର ଅଧିକାର
୯. କିଶୋରୀ ଅବସ୍ଥାର ମୂଳ ରହସ୍ୟ
୧୦. ଗର୍ଭାବସ୍ଥାରେ ନାରୀର ଯତ୍ନ
୧୧. ଏକ ରହସ୍ୟମୟ ସକାଳ (ଗର୍ଭବତୀର ଯତ୍ନପାଇଁ ପୁରୁଷର କର୍ତ୍ତବ୍ୟ)
୧୨. ଶିଶୁଟି ବଞ୍ଚିବା ଅପରିହାର୍ଯ୍ୟ (ପୁଷ୍ଟିକର ଖାଦ୍ୟ)
୧୩. ଶିଶୁଟି ବଞ୍ଚିବା ଅପରିହାର୍ଯ୍ୟ (ତରଳ ଝାଡ଼ା)
୧୪. ଶିଶୁଟି ବଞ୍ଚିବା ଅପରିହାର୍ଯ୍ୟ (ଥଣ୍ଡା ଓ କାଶ)



ଏହି ପୁସ୍ତକଗୁଡ଼ିକୁ ପଞ୍ଚାୟତର ସବୁଲୋକଙ୍କୁ ପଢ଼ାଇ ବୁଝାଯିବ। ବିଶେଷତଃ ସବୁ ମାଆ ଓ ଝିଅମାନେ ଯେପରି ଆଲୋଚନାରେ ଭାଗ ନେବେ, ସେଥିପାଇଁ ଗୁରୁତ୍ୱ ଦିଆଗଲା।

ଆଗରୁ ସାକ୍ଷରତା କେନ୍ଦ୍ରମାନ ଚାଲୁଥିଲା। ଶିକ୍ଷାର୍ଥୀମାନଙ୍କୁ ସ୍ୱେଚ୍ଛାସେବୀମାନେ ପଢ଼ାଉଥିଲେ। ଏବେ ପୁଣି ନବ ସାକ୍ଷର ତଥା ଅନ୍ୟମାନଙ୍କୁ ୨୫/୩୦ ଜଣିଆ ଦଳରେ ବସାଇ, ସ୍ୱାସ୍ଥ୍ୟ ସଚେତନ ପୁସ୍ତକଗୁଡ଼ିକୁ ପଢ଼ାଇ ବୁଝାଯାଇ ପାରିବ। ସେଥିପାଇଁ ଆଗ୍ରହୀ, ସ୍ୱେଚ୍ଛାସେବୀ ସହାୟକମାନଙ୍କୁ ତାଲିମ୍ ଦିଆଯିବ।

ଏହି ପଢ଼ାଇବା ଓ ବୁଝାଇବା କାର୍ଯ୍ୟକ୍ରମକୁ ଯୋଜନାବଦ୍ଧ ଭାବରେ ୧ ମାସ ଭିତରେ ଆରମ୍ଭ କରିବା ପାଇଁ ସ୍ଥିର ହେଲା। ସ୍ୱାସ୍ଥ୍ୟ ସମ୍ବନ୍ଧରେ ଗାଁର ସବୁଲୋକ ସଚେତନ ହେଲେ ପ୍ରାୟ ୯୦ ଭାଗ ରୋଗ ନିରାକରଣ ହୋଇ ପାରିବ ବୋଲି ସମସ୍ତେ ହୃଦୟଙ୍ଗମ କଲେ।

**୬. ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ତଥ୍ୟ ପାଇଁ ୩ଟି ରେଜିଷ୍ଟର ପ୍ରସ୍ତୁତି କରିବା :**

ପ୍ରତି ଗାଁ ପାଇଁ ତିନୋଟି ଲେଖାଁଏ ରେଜିଷ୍ଟର ପ୍ରସ୍ତୁତ କରାଯିବ ଯଥା :

(କ) ୫ ବର୍ଷରୁ କମ୍ ପିଲାଙ୍କ ପାଇଁ ରେଜିଷ୍ଟର। ଏଥିରେ ପିଲାଙ୍କ ପ୍ରତିଷେଧକ ଟିକା ଓ ଓଜନ ସମ୍ବନ୍ଧୀୟ ତଥ୍ୟ ରହିବ।

(ଖ) ଗର୍ଭବତୀ ମହିଳାଙ୍କ ପାଇଁ ରେଜିଷ୍ଟର।

ଏଥିରେ ମୁଖ୍ୟତଃ ଗର୍ଭବତୀ ମହିଳାଙ୍କ ଟିଟାନସ୍ ଟିକା, ଚିହ୍ନଟ କରାଯାଇଥିବା ଗର୍ଭ ସମସ୍ୟା ଆଦି ସମ୍ବନ୍ଧରେ ତଥ୍ୟ ରହିବ।

(ଗ) ଅନ୍ୟାନ୍ୟ ରୋଗ ପାଇଁ ରେଜିଷ୍ଟର :

ଏଥିରେ କାମଳ, ପତଳା ଝାଡ଼ା, କୁଷ୍ଠ, ମେଲେରିଆ, ଫାଇଲେରିଆ ଇତ୍ୟାଦି ବିଷୟରେ ତଥ୍ୟ ରହିବ।

୭. **ଶିଶୁଙ୍କ ପାଇଁ ପ୍ରତିଷେଧକ ବ୍ୟବସ୍ଥା ଓ ଓଜନ ନିରୂପଣ :**

ପ୍ରତ୍ୟେକ ଶିଶୁ ଜନ୍ମକୁ ପଞ୍ଜିକରଣ କରାଯିବା ଆବଶ୍ୟକ। ପ୍ରତ୍ୟେକ ଶିଶୁ ପ୍ରତିଷେଧକ ଟିକା ନେବା ଏକାନ୍ତ ଜରୁରୀ। ମାତ୍ର ସର୍ଭେରୁ ଜଣାଯାଉଛି, ଗାଁର ୫୦ ଭାଗ ପିଲା ଟିକା ନେଇ ନାହାନ୍ତି। ଅନେକ ଆଂଶିକ ଭାବରେ ଟିକା ନେଇଛନ୍ତି। ମନେ ରଖିବାକୁ ହେବ ଯେ ଆଂଶିକ ଭାବରେ ଟିକା ନେବା-ଟିକା ନନେବା ସାଙ୍ଗରେ ସମାନ। ତେଣୁ ସବୁ ପିଲାଙ୍କୁ ଟିକା ଦେବା ପାଇଁ ଓ ସେମାନଙ୍କର ଓଜନ ମାପିବା ପାଇଁ ଯୋଜନା ପ୍ରସ୍ତୁତ କରାଗଲା।

(କ) ଏଥିପାଇଁ ପ୍ରଥମେ ପ୍ରତି ଗାଁର ସାହି ସାହିରେ ପ୍ରତିଷେଧକ ଟିକା ସମ୍ବନ୍ଧୀୟ ସ୍ୱାସ୍ଥ୍ୟ ସଚେତନ ପୁସ୍ତିକା ପଢ଼ାଇ ଲୋକମାନଙ୍କୁ ବୁଝାଇବା ପାଇଁ ସ୍ଥିର କରାଗଲା।

(ଖ) ପ୍ରତି ଗାଁର ଟିକା ନନେଇଥିବା ବା ଆଂଶିକ ଟିକା ନେଇଥିବା ପିଲାଙ୍କ ନାମ ରେଜିଷ୍ଟରରେ ଲେଖିବା ପାଇଁ ଠିକ୍ ହେଲା

(ଗ) ପ୍ରତି ଗାଁ ପାଇଁ ନିର୍ଦ୍ଦିଷ୍ଟ ଦିନ ଧାର୍ଯ୍ୟ କରାଗଲା। ସେ ଦିନ ମା'ମାନେ ପିଲାମାନଙ୍କୁ ନେଇ ଗାଁ ଭାଗବତ ଘର ବା କ୍ଲବ ଘର ବା ସ୍କୁଲରେ ପହଞ୍ଚିବେ। ସେହିଦିନ ପ୍ରତି ଗାଁ କମିଟିର ସଭ୍ୟ, ସ୍ୱେଚ୍ଛାସେବୀମାନେ ସେଠାରେ ଉପସ୍ଥିତ ରହିବେ। ପ୍ରତିଷେଧକ ଟିକାଦାନ ସହିତ ସବୁପିଲାଙ୍କ ଓଜନ ନିଆଯିବ। ଟିକାଦାନର ୨ ଦିନ ପୂର୍ବରୁ ପ୍ରତି ଗାଁରେ ଢେଙ୍କୁରା ପିଟି ଲୋକମାନଙ୍କୁ ଜଣାଇ ଦିଆଯିବ।

ଏହିପରି ଭାବରେ ନିୟମିତ ବ୍ୟବଧାନରେ ଶିଶୁମାନଙ୍କର ଟିକାଦାନ ଓ ଓଜନ ନିରୂପଣ କରାଯିବ।

(ଘ) ପଞ୍ଚାୟତ କମିଟି ତରଫରୁ ସରପଞ୍ଚ, ସଂଯୋଜକ ଓ ସହ ସଂଯୋଜକ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରରେ ଏହି ଯୋଜନାଟି ଲିଖିତ ଆକାରରେ ଜଣାଇ ଦେବେ। ଫଳରେ ପ୍ରତିଷେଧକ ଟିକାଦାନ କାର୍ଯ୍ୟକ୍ରମ ସଂପୂର୍ଣ୍ଣ ସଫଳ ହୋଇପାରିବ। ଝରଣା ଦିଦିଙ୍କୁ କୁହାଗଲା, ଏଥର ପଞ୍ଚାୟତରେ ୧୦୦% ପ୍ରତିଷେଧକ ଟିକା ଦିଆଯିବା ପାଇଁ ପଞ୍ଚାୟତ ସ୍ୱାସ୍ଥ୍ୟ କମିଟି ସୁବିଧା କରି

ଦେଉଛି। କିନ୍ତୁ ଏହାପରେ ଝରଣା ଦିଦିଙ୍କ ଦାୟିତ୍ୱ ହେଲା ନୂଆ ଶିଶୁଟିଏ ଜନ୍ମ ହେଲେ ତା'ର ପଞ୍ଜିକରଣ ସହ ଠିକ୍ ସମୟରେ ଟିକା ଦେବା। ଏଥିପାଇଁ ସେ ଯେତେବେଳେ ଗାଁ ସ୍ୱାସ୍ଥ୍ୟ କମିଟିର ସାହାଯ୍ୟ ଚାହିଁବେ, ଗାଁ ସ୍ୱାସ୍ଥ୍ୟ କମିଟି ସାହାଯ୍ୟ କରିବା ପାଇଁ ପ୍ରସ୍ତୁତ ରହିବ।

୮. **ଗର୍ଭବତୀ ମାଆମାନଙ୍କ ପାଇଁ ଯତ୍ନ :**

(କ) ଟିଟାନସ୍ ଟିକା ଓ ଆଇରନ ବଟିକା:

ସର୍ଭେରୁ ଜଣାଯାଇଛି ପ୍ରାୟ ଶତକଡ଼ା ୫୦ରୁ ଊର୍ଦ୍ଧ୍ୱ ଗର୍ଭବତୀ ମହିଳା ଟିଟାନସ ଟିକା ନେଇ ନାହାନ୍ତି କି ଆଇରନ୍ ବଟିକା ଖାଇ ନାହାନ୍ତି। ଅଧିକାଂଶ ଏ ବିଷୟରେ ଆଦୌ ଅବଗତ ନୁହନ୍ତି।

ଏଥିପାଇଁ ପ୍ରଥମେ ସବୁ ମାଆମାନଙ୍କୁ ମହିଳା ସ୍ୱେଚ୍ଛାସେବୀଙ୍କ ସାହାଯ୍ୟରେ ଝରଣା ଦିଦି ସଚେତନ କରାଇବେ।

ଗାଁ ସ୍ୱାସ୍ଥ୍ୟ କମିଟି ଦ୍ୱାରା ଏଥିପାଇଁ ଥିବା ରେଜିଷ୍ଟରରେ ଗର୍ଭବତୀ ମହିଳାଙ୍କ ପାଇଁ ନାମ ପଞ୍ଜିକରଣ କରାଯିବ। ଝରଣା ଦିଦି, ଗର୍ଭ ସମସ୍ୟା ଥିବା ଗର୍ଭବତୀ ମହିଳାଙ୍କୁ ଚିହ୍ନଟ କରିବେ।

ସବୁ ଗର୍ଭବତୀ ମହିଳା ଯେପରି ଟିଟାନସ ଟିକା ନେବେ ଓ ଆଇରନ୍ ବଟିକା ନିୟମିତ ଭାବରେ ଖାଇବେ ସେଥିପାଇଁ ଝରଣା ଦିଦି ଦାୟିତ୍ୱ ନେଲେ। ସମସ୍ୟା ଥିବା ଗର୍ଭବତୀ ମହିଳାଙ୍କ ପାଇଁ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ତରଫରୁ ଅଧିକ ଦାୟିତ୍ୱ ନିଆଯିବ ବୋଲି ଡ଼ାକ୍ତରବାବୁ ପ୍ରତିଶ୍ରୁତି ଦେଲେ।

(ଖ) ଧାଈ ତାଲିମ ବ୍ୟବସ୍ଥା :

ଘରେ ସୁବିଧାରେ ପ୍ରସୂତି କାମ କରାଇବା ପାଇଁ ଗାଁରେ ଥିବା ଧାଈମାନଙ୍କୁ ଅଧିକ ତାଲିମ ଦେବା ଆବଶ୍ୟକ। ଏଥିପାଇଁ ଅନ୍ତତଃ ୬ ମାସ ଭିତରେ ତାଲିମ୍ କାର୍ଯ୍ୟ ସଂପାଦନ କରାଯିବ ବୋଲି ସ୍ଥିର କରାଗଲା।

(ଗ) ପ୍ରତି ଗର୍ଭବତୀ ମହିଳାଙ୍କୁ (ପ୍ରସବ ପାଇଁ) ନିରାପଦ ଉପକରଣ ସାମଗ୍ରୀ (ଡ଼ି.ଡ଼ି.କେ.) ଯୋଗାଇ ଦିଆଯିବା

ପାଇଁ ନିଷ୍ପତ୍ତି ନିଆଗଲା। ଏହା ସରକାରଙ୍କ ତରଫରୁ ମାଗଣାରେ ଯୋଗାଇ ଦିଆଯିବ। ସେଥିପାଇଁ ଡାକ୍ତରବାବୁ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ଦ୍ୱାରା ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଲେ।

୯. **ପୁଷ୍ଟିକର ଲଡୁ ପ୍ରସ୍ତୁତି :**

ସର୍ଭେ ସମୟରେ ବୁଲିବା ବେଳେ ଦେଖାଗଲା, ପ୍ରତି ଗାଁରେ ଅଧିକାଂଶ ପିଲା ପୁଷ୍ଟିହୀନତା ରୋଗରେ ପିଡ଼ିତ। ପୁଷ୍ଟିକର ଖାଦ୍ୟ କିପରି ଅତି ଅଳ୍ପ ଖର୍ଚ୍ଚରେ ପ୍ରସ୍ତୁତ କରାଯାଇ ପାରିବ ଓ ସବୁପିଲାଙ୍କୁ ଆବଶ୍ୟକତାନୁସାରେ ଯୋଗାଇ ଦିଆଯାଇ ପାରିବ, ସେଥିପ୍ରତି ନିମ୍ନମତେ ଯୋଜନା କରାଗଲା।

(କ) ପ୍ରଥମେ ସବୁ ମାଆମାନଙ୍କୁ ପୁଷ୍ଟିକର ଖାଦ୍ୟ ଓ ତା'ର ଆବଶ୍ୟକତା ସମ୍ବନ୍ଧରେ ବୁଝାଇ ଦିଆଯିବ। ଏଥିପାଇଁ ଥିବା "ସ୍ୱାସ୍ଥ୍ୟ ସଚେତନ ପୁସ୍ତିକା" ସାହି ସାହିରେ ପଢ଼ି ଆଲୋଚନା କରାଯିବ।

(ଖ) ପଞ୍ଚାୟତ ତରଫରୁ ଅଳ୍ପ ଖର୍ଚ୍ଚରେ ପୋଷକ ଲଡୁ ତିଆରି କରି କମ୍ ଦାମରେ ଯୋଗାଇ ଦିଆଯିବ। କେଉଁ ପିଲା ପାଇଁ ଦିନକୁ କେତୋଟି ଲଡୁ ଦରକାର ତାହା ମାଆମାନଙ୍କୁ ଜଣାଇ ଦିଆଯିବ। ସ୍କୁଲରେ ପିଲାମାନଙ୍କୁ ନିୟମିତ ଭାବରେ ଏହି ଲଡୁ ଖୁଆଇବାର ବ୍ୟବସ୍ଥା କରାଯିବ।

ସବୁ ପିଲାଙ୍କୁ ସ୍କୁଲକୁ ପଠାଇବାପାଇଁ ବାପା ମା ମାନଙ୍କୁ ବୁଝାଇବା ସଂଗେ ସଂଗେ ତାଗିଦ୍ କରାଯିବ। ଗାଁ ଦୋକାନ ମାନଙ୍କରେ ଏହି ପୋଷକ ଲଡୁ ଯେପରି ଶସ୍ତାରେ ବିକ୍ରିହେବ ତାର ବ୍ୟବସ୍ଥା କରାଯିବ।

ପୋଷକ ଲଡୁ : ଲଡୁ ଓଜନ ୨୦୦ ଗ୍ରାମ୍। ଏଥିରେ ମିଶୁଥିବା ଜିନିଷର ଅନୁପାତ :

(୧) ମାଣ୍ଡିଆ ୨୦୦ ଗ୍ରାମ୍

(୨) ଅଟା ବା ଚାଉଳଚୁନା ୨୦୦ ଗ୍ରାମ୍

(୩) ଚିନାବାଦାମ ଓ ଡ଼ାଲି ୫୦ ରୁ ୧୦୦ ଗ୍ରାମ୍

(୪) ଖାଇବା ତେଲ ୧ ଚାମଚ

(୫) ଗୁଡ଼ ୫୦ ଗ୍ରାମ୍

ପୁଷ୍ଟିହୀନତାକୁ ଲକ୍ଷ୍ୟ କରି ଦିନକୁ ଗୋଟିଏ ବା ଦୁଇଟି ଲଡୁ ଦରକାର ହେବ।

୧୦. ପରିମଳ ବ୍ୟବସ୍ଥା :-

(କ) ଅଳିଆ ଖାତ :

ପ୍ରତି ଗାଁରେ ଲୋକମାନେ ଅଳିଆ ଆବର୍ଜନା ଯେଉଁଠି ଇଚ୍ଛା ସେଇଠି ଗଦା କରି ପକାଇଛନ୍ତି। ଏହା ଫଳରେ ମାଛି, ମଶାଙ୍କର ପ୍ରାଦୁର୍ଭାବ ବଢୁଛି। ଅଳିଆରୁ କିପରି ଉତ୍ତମ ଖତସାର କରି ହେବ .ସେଥିପାଇଁ ଲୋକଙ୍କୁ ଶିକ୍ଷା ଦେବା ପାଇଁ ସ୍ଥିର ହେଲା। ଏହା ଦ୍ୱାରା ଅଳିଆ ଗଦା ରୋଗର କାରଣ ନ ହୋଇ ସଂପଦରେ ପରିଣତ ହେବ।

(ଖ) ମଇଳା ପାଣି :

ପ୍ରତି ଗାଁରେ ଲୋକମାନେ ଘରଗୁଡ଼ିକର ମଇଳା ପାଣି ଦାଣ୍ଡକୁ ଛାଡ଼ି ଦିଅନ୍ତି। ଏହାଦ୍ୱାରା ଗାଁ ଦାଣ୍ଡ ଅପରିଷ୍କାର ଓ ଅପରିଚ୍ଛନ୍ନ ରହେ। ନାନା ପ୍ରକାର ରୋଗ ସଂକ୍ରମଣ ହୁଏ। ଏହି ପାଣିକୁ ଦାଣ୍ଡରେ ନଛାଡ଼ି, କିପରି ଘରର ବଗିଚା ପାଇଁ ବ୍ୟବହାର କରାଯିବ ସେଥିପାଇଁ ଲୋକମାନଙ୍କୁ ବୁଝାଇ ଦିଆଯିବ। ଏହି ପାଣିକୁ ବ୍ୟବହାର କରି ଘର ବାରିରେ ଅମୃତଭଣ୍ଡା, ସଜନା, କଦଳୀ, ଲେମ୍ବୁ, ପିଜୁଳି, ଶାଗ, ପନିପରିବା ଆଦି ଲଗାଯାଇ ପାରିବ। ଏହାଦ୍ୱାରା ଘରର ଚଳିବା ପାଇଁ ସ୍ୱାସ୍ଥ୍ୟ ହିତକର ଫଳ ଓ ପନିପରିବା ମିଳି ପାରିବ।

ଯେଉଁମାନେ ମଇଳା ପାଣି ଗାଁ ଦାଣ୍ଡକୁ ଛାଡ଼ିବେ ବା ଯେଉଁମାନେ ଗାଁ ଦାଣ୍ଡରେ ଅଳିଆ ପକାଇ ଅପରିଷ୍କାର କରିବେ, ସେମାନଙ୍କ ଉପରେ ଗାଁ କମିଟି ଜୋରିମନା (ଦଣ୍ଡ) ବସାଇବେ।

**୧୧. ପାନୀୟ ଜଳ :**କୂଅ ଗୁଡ଼ିକର ପାଣି ପାନୀୟଯୋଗ୍ୟ କରିବା ପାଇଁ କୂଅଗୁଡ଼ିକୁ ଆଦର୍ଶ କୂଅ ଭାବରେ ତିଆରି କରାଯିବ। ଦରକାର୍ ହେଲେ ନୂଆ କୂଅ ଖୋଳାଯିବ ।

(କ) ଏଥିପାଇଁ ପଞ୍ଚାୟତ ବା ଗାଁ କୋଠରୁ ଆବଶ୍ୟକ ପରିମାଣର ଟଙ୍କା ମଞ୍ଜୁର କରି ଖର୍ଚ୍ଚ କରାଯିବ। ପ୍ରତି କୂଅରେ ଢାଙ୍କୁଣୀ ଲଗାଯିବ। ଆବଶ୍ୟକ ମୁତାବକ ବ୍ଲିଚିଂ ପାଉଡ଼ର ପକାଯିବ। କୂଅର ଯତ୍ନ ନେବା ଓ ବ୍ଲିଚିଂ ପାଉଡ଼ର ବ୍ୟବହାର୍ କରିବା ପାଇଁ ସାହିର ସ୍ତ୍ରୀ ଲୋକଙ୍କୁ ତାଲିମ୍ ଦିଆଯିବ। ଅଧିକ ଟଙ୍କା ଯୋଗାଡ଼ ହୋଇ ପାରିଲେ ପ୍ରତି କୂଅ ପାଖରେ ଗୋଟିଏ ଗୋଟିଏ ଟାଙ୍କି ତିଆରି କରାଯିବ। କୂଅରୁ ପାଣି ପମ୍ପ କରି ଟାଙ୍କିରେ ରଖାଯିବ। ଏହି ପାଣିରେ ବ୍ଲିଚିଂ ପାଉଡ଼ର ପକାଇ ନିୟମିତ ବିଶୋଧନ କରାଯିବ। ଟାଙ୍କିରେ ଟ୍ୟାପ୍ ଲଗାଯାଇଥିବ। ଲୋକେ ଟ୍ୟାପ୍ ଖୋଲି ପାଣି ବ୍ୟବହାର କରିବେ।

(ଖ) ପୋଖରୀ : ଯେଉଁ ପୋଖରୀ ପାଣି, ପିଇବା ପାଇଁ ବ୍ୟବହାର କରାଯାଉଛି, ସେହି ପୋଖରୀ ଚାରିପାଖେ ବାଡ଼ ବୁଜାଯିବ ଓ ଉଚ୍ଚାବନ୍ଧ କରାଯିବ। ପୋଖରୀରେ ସିମେଣ୍ଟ ପାହାଚ କରାଯିବ। ଫଳରେ ପାହାଚ ଉପରେ ଛିଡ଼ା ହୋଇ ଲୋକେ ପାଣି ଆଣି ପାରିବେ।

ପୋଖରୀ ପାଖରେ ଗୋଟିଏ ଟାଙ୍କି କରାଯାଇ ପାରିବ। ଟାଙ୍କିରେ ପ୍ରତିଦିନ ପୋଖରୀରୁ ପାଣି ଭର୍ତ୍ତି କରାଯିବ। ନିୟମିତ ବ୍ଲିଚିଂ ପାଉଡ଼ର ପକାଇ ଟାଙ୍କି ପାଣିକୁ ବିଶୋଧନ କରାଯିବ। ଲୋକମାନେ ଏହି ଟାଙ୍କିରୁ ଟ୍ୟାପ୍ ଖୋଲି ପାଣି ଆଣିବେ।

(ଗ) ନଳକୂଅ :-ବିଭିନ୍ନ ଗାଁରେ ଥିବା ନଳକୂଅର ଆବଶ୍ୟକ ଯତ୍ନ ନିଆଯିବ। ଏଥିପାଇଁ ମହିଳା କମିଟିମାନ ଗଠନ କରାଯାଇ ସେମାନଙ୍କୁ ଦାୟିତ୍ୱ ଦିଆଯିବ ବୋଲି ସ୍ଥିର ହେଲା। ନଳକୂଅଗୁଡ଼ିକର ମରାମତି ପାଇଁ ପ୍ରତି ସାହିର ଜଣେ ଜଣେ ମହିଳାଙ୍କୁ ତାଲିମ୍ ଦିଆଯିବ। ଘରେ ପାଣି ବ୍ୟବହାର ସଂପର୍କରେ ଲୋକମାନଙ୍କୁ ଶିକ୍ଷା ଦିଆଯିବ। ପାଣିକୁ ବିଶୋଧନ କରି କିପରି ରଖାଯିବ ଓ ବିଶୋଧିତ ହୋଇ ନଥିବା ପାଣି ଅଣାଯାଉଥିଲେ ତାକୁ କିପରି ବ୍ଲିଚିଂ ପାଉଡ଼ର ଦ୍ରବଣ ବା କ୍ଲୋରିନ୍ ପକାଯାଇ ବିଶୋଧିତ କରାଯିବ, ସେସଂପର୍କରେ ସଚେତନ କରାଯିବ।

(ଘ) ପିଇବା ପାଣିରେ ହାତ ବା ଆଙ୍ଗୁଠି ନ ବୁଡ଼ାଇବା ପାଇଁ, ଖାଇବା ପିଇବା ଆଗରୁ ହାତ ଅପରିଷ୍କାର ପରିଚ୍ଛନ୍ନ ରଖିବା ପାଇଁ ସମସ୍ତଙ୍କୁ ଶିକ୍ଷା ଦିଆଯିବ। ଏଥିପାଇଁ ସ୍କୁଲମାନଙ୍କରେ ସ୍ୱତନ୍ତ୍ର ଭାବରେ ପିଲାମାନଙ୍କୁ ଶିକ୍ଷା ଦିଆଯିବ ଓ ସଚେତନ କରାଯିବ।

୧୨. **ପାଇଖାନା ବ୍ୟବହାର:** ପାଇଖାନା ବ୍ୟବହାରର୍ ଉପକାରିତା ସଂପର୍କରେ ଗାଁ ଲୋକଙ୍କୁ ବୁଝାଯିବ। ପଞ୍ଚାୟତ ତରଫରୁ ଅଳ୍ପ ଖର୍ଚ୍ଚରେ ପାଇଖାନା ଯୋଗାଇ ଦେବା ପାଇଁ ବ୍ୟବସ୍ଥା କରାଯିବ। ଲୋକମାନେ ନିଜ ତରଫରୁ କିଛି ଖର୍ଚ୍ଚ କରି ନିଜ ନିଜ ଘରେ ପାଇଖାନା କରିବେ ବୋଲି ସ୍ଥିର ହେଲା। ଯେଉଁ ଲୋକମାନଙ୍କ ବାରିରେ ଜାଗା ନାହିଁ, ସେ କ୍ଷେତ୍ରରେ ସାମୂହିକ ପାଇଖାନା କରାଯିବ ବୋଲି ସ୍ଥିର କରାଗଲା।

**୧୩ - ପାଳିଜ୍ୱର ଓ ବାତଜ୍ୱର ପାଇଁ ପଦକ୍ଷେପ** - ସର୍ଭେରୁ ଜଣାଗଲା ଯେ ପଞ୍ଚାୟତରେ ପାଳିଜ୍ୱର ଓ ବାତଜ୍ୱରର ପ୍ରାଦୁର୍ଭାବ ଯଥେଷ୍ଟ ଅଧିକ। ଅଧିକାଂଶ ଲୋକ ଏ ସବୁ ଜ୍ୱରରେ ପଡ଼ି ଦୁର୍ବଳ ହୋଇପଡୁଛନ୍ତି। କାମଧନ୍ଦାକୁ ଯାଇପାରୁନାହାନ୍ତି। ରୋଜଗାର କରିବା କ୍ଷମତା କମିଯାଉଛି। ମଶା ପାଳିଜ୍ୱର ଓ ବାତଜ୍ୱରର କାରଣ ବୋଲି ଲୋକମାନଙ୍କୁ ସଚେତନ କରାଯିବ। ମଶା ନ ହେବାପାଇଁ ପରିମଳ ବ୍ୟବସ୍ଥାର ଗୁରୁତ୍ୱ ଉପରେ ଉତ୍ତମ ରୂପେ ଧାରଣା ଦିଆଯିବ।

ତାଛଡ଼ା, ମଶାରି ଟାଙ୍ଗି ଶୋଇବାପାଇଁ ସମସ୍ତଙ୍କୁ ବୁଝାଯିବ। ଏବେ ମଶା ଘଉଡ଼ାଇବା ଔଷଧ ଲଗାଇ ମଶାରି ତିଆରି କରାଯାଉଛି। ଏହି ମଶାରିର ଦାମ ପ୍ରାୟ ୬୦ ଟଙ୍କା ହେଉଛି। ଏହି ମଶାରିଗୁଡ଼ିକୁ ଶସ୍ତାରେ ତିଆରି କରିବା ପାଇଁ ପଞ୍ଚାୟତ ତରଫରୁ ବ୍ୟବସ୍ଥା କରାଯିବାପାଇଁ ନିଷ୍ପତ୍ତି ନିଆଗଲା। ପ୍ରତି ପରିବାର ତା'ର ଆବଶ୍ୟକତା ଅନୁସାରେ ଏହି ମଶାରିଗୁଡ଼ିକୁ କିପରି ଧାର ସୂତ୍ରରେ କିଣିପାରିବେ ଓ କିସ୍ତିରେ ପରିଶୋଧ କରିପାରିବେ, ସେଥିପାଇଁ ଆବଶ୍ୟକ ଯୋଜନା କରିବାପାଇଁ ନିଷ୍ପତ୍ତି ନିଆଗଲା।

(କ) ପାଳିଜ୍ୱର ପାଇଁ କ୍ଲୋରୋକୁଇନ୍ ବଟିକା ଆବଶ୍ୟକ। ପଞ୍ଚାୟତପାଇଁ ଆବଶ୍ୟକ ମୁତାବକ କ୍ଲୋରୋକୁଇନ୍ ବଟିକା ଯେପରି ମହଜୁଦ୍ ରହିବ, ସେଥିପାଇଁ ପଞ୍ଚାୟତ କମିଟି ଦାୟିତ୍ୱ ନେବ ବୋଲି ସ୍ଥିର କରାଗଲା।

(ଖ) ବାତଜ୍ୱର ରୋଗୀଙ୍କ ଚିକିତ୍ସାପାଇଁ ସ୍ୱାସ୍ଥ୍ୟ କର୍ମୀ ଓ ଡ଼ାକ୍ତରଙ୍କୁ ପରାମର୍ଶ କରି ବ୍ୟବସ୍ଥା କରିବାକୁ ହେବ। ବାତଜ୍ୱର ପାଇଁ ଡ଼ାଇ-ଇଥାଇଲ କର୍ବାମାଜିନ୍ ଔଷଧ (ଉଦାହରଣ -ବାନୋସାଇଡ଼୍ ବଟିକା) ଦରକାର। ଏସବୁ ପଞ୍ଚାୟତରେ ଆବଶ୍ୟକ ମୁତାବକ ମିଳିବା ସକାଶେ ପଞ୍ଚାୟତ କମିଟି ବ୍ୟବସ୍ଥା କରିବେ ବୋଲି ନିଷ୍ପତ୍ତି ନିଆଗଲା।

**୧୪ - କାଲୁଆ ଛଉ -** ସର୍ଭେରୁ ଜଣାପଡ଼ିଲା ପଞ୍ଚାୟତରେ ଅନେକ ଲୋକଙ୍କ ପାଖରେ କାଲୁଆ ଛଉ ରୋଗ ହୋଇଛି। କାଲୁଆ ଛଉ, କୁଷ୍ଠରୋଗ ପାଇଁ ହୋଇଥାଇପାରେ। ତେଣୁ ଏସବୁ ରୋଗୀଙ୍କୁ ଡ଼ାକ୍ତରୀ ପରୀକ୍ଷା କରି ରୋଗ ନିର୍ଣ୍ଣୟ କରିବାକୁ ହେବ। କୁଷ୍ଠରୋଗ ଚିହ୍ନଟ ହେଲେ ଚିକିତ୍ସାପାଇଁ ରୋଗୀମାନେ ଯେପରି ନିୟମିତ ଔଷଧ ଖାଇବେ ସେଥିପାଇଁ ପଞ୍ଚାୟତ ସ୍ୱାସ୍ଥ୍ୟ କମିଟି ପଦକ୍ଷେପ ଗ୍ରହଣ କରିବେ। (କୁଷ୍ଠରୋଗ ନିରାକରଣପାଇଁ ସରକାରଙ୍କ ତରଫରୁ ମାଗଣାରେ ଔଷଧ ମିଳେ) କୁଷ୍ଠରୋଗକୁ ନ ଲୁଚାଇ, ଚିକିତ୍ସା କରାଇଲେ ସମ୍ପୂର୍ଣ୍ଣ ଭଲହୁଏ। ଏଥିପାଇଁ ଜନସାଧାରଣଙ୍କୁ ସଚେତନ କରାଇବାପାଇଁ ଆବଶ୍ୟକ ପଦକ୍ଷେପ ନିଆଯିବାପାଇଁ ନିଷ୍ପତ୍ତି ନିଆଗଲା।

**୧୫ - ସ୍ୱାସ୍ଥ୍ୟ ସହାୟକ ମାନଙ୍କୁ ତାଲିମ ପ୍ରଦାନ -** ପ୍ରତି ଗାଁରୁ ୨ ଜଣ ଲେଖାଏଁ, ସ୍ୱାସ୍ଥ୍ୟ ସ୍ୱେଚ୍ଛାସେବୀଙ୍କୁ ବଛାଯିବ। ପଞ୍ଚାୟତ ତରଫରୁ ଏହି ସ୍ୱେଚ୍ଛାସେବୀମାନଙ୍କୁ ଦୁଇଟି ପର୍ଯ୍ୟାୟରେ ୧୦ ଦିନିଆ ତାଲିମ ଦିଆଯିବ। ଔଷଧ ବ୍ୟବହାର କରି ସେମାନେ ଗାଁର ସଂପୂର୍ଣ୍ଣ ସ୍ୱାସ୍ଥ୍ୟକୁ ଆଖିରେ ରଖି ଗାଁ କମିଟି ସାହାଯ୍ୟରେ ସରକାରୀ ସ୍ୱାସ୍ଥ୍ୟ ବ୍ୟବସ୍ଥାକୁ ଉପଯୋଗ କରିପାରିବେ। ସେମାନେ କେତେକ ପ୍ରାଥମିକ ଚିକିତ୍ସା ମଧ୍ୟ କରିପାରିବେ। ରୋଗ ନ ହେବା ପାଇଁ ପଦକ୍ଷେପ ନେବେ। ଏହାଦ୍ୱାରା ଅସ୍ୱାଭାବିକ ରୋଗ ବେମାରୀ ଓ ମୃତ୍ୟୁକୁ ଗାଁ ସ୍ତରରେ ହ୍ରାସ କରାଯାଇପାରିବ।

**୧୬ - ୨ ସପ୍ତାହରୁ ଅଧିକ ଦିନ ଧରି ଜ୍ୱର -** ସର୍ଭେରୁ ଜଣାପଡ଼ିଲା, ୨ ସପ୍ତାହରୁ ଅଧିକ ଦିନ ଧରି ଜ୍ୱର ହୋଇଥିବା ରୋଗୀଙ୍କ ସଂଖ୍ୟା ଅଧିକ। ଏହି ଜ୍ୱର ଟାଇଫଏଡ଼୍ ବା ଯକ୍ଷ୍ମାରୋଗ ପାଇଁ ହୋଇ ଥାଇପାରେ। ତେଣୁ ଏସବୁ ରୋଗର

ପରୀକ୍ଷା ,ଚିକିତ୍ସା ଓ ନିରାକରଣ ପାଇଁ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରର ସହାୟତାରେ କାର୍ଯ୍ୟକ୍ରମ ଗ୍ରହଣ କରିବାପାଇଁ ନିଷ୍ପତ୍ତି ନିଆଗଲା ।

# ସାରାଂଶ

## ପଞ୍ଚାୟତ ସ୍ୱାସ୍ଥ୍ୟ ଯୋଜନାର ଏକ ନମୁନା

### ସମୟ ନିର୍ଘଣ୍ଟ :

ମାସ -୧ (କ) ପ୍ରଥମ ୧୦ ଦିନ - ସ୍ୱାସ୍ଥ୍ୟ ଅଭିଯାନ ସଂପର୍କରେ ସ୍ୱେଚ୍ଛାସେବୀମାନଙ୍କ ସହ ଆଲୋଚନା ।

(ଖ) ଦ୍ୱିତୀୟ ୧୦ ଦିନ - ସ୍ୱାସ୍ଥ୍ୟ ସର୍ଭେ ପାଇଁ ତାଲିମ୍ ଓ ସର୍ଭେ କାର୍ଯ୍ୟକ୍ରମ ।

(ଗ) ତୃତୀୟ ୧୦ ଦିନ - ପଞ୍ଚାୟତ ସ୍ୱାସ୍ଥ୍ୟ ଯୋଜନା ପ୍ରସ୍ତୁତି ଓ ପଞ୍ଚାୟତ ସ୍ୱାସ୍ଥ୍ୟ କମିଟି ଗଠନ ।

ମାସ -୨ (କ) ପ୍ରଥମ ୧୦ ଦିନ - ପ୍ରତି ଗାଁରେ ସ୍ୱାସ୍ଥ୍ୟ କମିଟିମାନ ଗଠନ ।

(ଖ) ଦ୍ୱିତୀୟ ୧୦ ଦିନ - ଗାଁ ସ୍ୱାସ୍ଥ୍ୟ କମିଟି ଗୁଡ଼ିକରେ ସ୍ୱାସ୍ଥ୍ୟ ଯୋଜନା ସଂପର୍କରେ ଆଲୋଚନା ଓ ନିଷ୍ପତ୍ତି ଗ୍ରହଣ ।

(ଗ) ତୃତୀୟ ୧୦ ଦିନ - ସ୍ୱେଚ୍ଛାସେବୀ ସ୍ୱାସ୍ଥ୍ୟକର୍ମୀମାନଙ୍କର ପ୍ରଥମ ପର୍ଯ୍ୟାୟ ତାଲିମ୍

ମାସ -୩ (କ) ପ୍ରଥମ ୧୫ ଦିନ - ତିନୋଟି ସ୍ୱାସ୍ଥ୍ୟ ରେଜିଷ୍ଟର ପ୍ରସ୍ତୁତି

ଯଥା: ଶିଶୁମାନଙ୍କ ପାଇଁ ରେଜିଷ୍ଟର, ସ୍ୱାସ୍ଥ୍ୟ ଅଭିଯାନ ପାଇଁ ସଭା ସମିତି
ଗର୍ଭବତୀମାନଙ୍କ ପାଇଁ ରେଜିଷ୍ଟର, ପରିମଳ ସପ୍ତାହ ପାଳନ
ସାଧାରଣ ରୋଗ ବେମାରୀ ପାଇଁ ରେଜିଷ୍ଟର ।

(ଖ) ଦ୍ୱିତୀୟ ୧୫ ଦିନ - ଶିଶୁ ଓ ଗର୍ଭବତୀ ମହିଳାଙ୍କ ଟିକାଦାନ ପାଇଁ ସ୍ୱାସ୍ଥ୍ୟ ସଚେତନ ଆଲୋଚନା ମାଳା ।

- ଶିଶୁମାନଙ୍କୁ ପ୍ରତିଷେଧକ ଟିକାଦାନ (ପ୍ରଥମ ପର୍ଯ୍ୟାୟ)
- ଗର୍ଭବତୀ ମହିଳାମାଙ୍କୁ ଟିଟାନସ୍ ଟିକାଦାନ (ପ୍ରଥମ ପର୍ଯ୍ୟାୟ)

ମାସ - ୪ ପ୍ରଥମ ୧୫ ଦିନ - ସ୍ୱାସ୍ଥ୍ୟ ସଚେତନ ପୁସ୍ତିକୁ ନେଇ ସାହି ସାହିରେ ଆଲୋଚନାଚକ୍ର ଆରମ୍ଭ ।

- ହାତ ତିଆରି ପୋଷ୍ଟର ପ୍ରଦର୍ଶନୀ ,କାନ୍ଥବାଡ଼ରେ ସ୍ୱାସ୍ଥ୍ୟ ସ୍ଲୋଗାନ ଲେଖା ।

୨ୟ ୧୫ ଦିନ - ସ୍ୱାସ୍ଥ୍ୟ ସଚେତନ ପୁସ୍ତକକୁ ନେଇ ଆଲୋଚନାଚକ୍ର ଚାଲୁରଖିବା ।

- ସ୍ୱାସ୍ଥ୍ୟ କଳାଯାତ୍ରା, ସ୍ୱାସ୍ଥ୍ୟ ଗଣ ସଂଗୀତଗାନ, ସ୍ୱାସ୍ଥ୍ୟ ପ୍ରଦର୍ଶନୀର ଆୟୋଜନ ।
- ଶିଶୁ ପ୍ରତିଷେଧକ ଟିକା ଦାନ (୨ୟ ପର୍ଯ୍ୟାୟ)
- ଗର୍ଭବତୀ ମହିଳାକଙ୍କୁ ଟିଟାନସ୍ ଟିକା ଦାନ । (୨ୟ ପର୍ଯ୍ୟାୟ)

ମାସ -୫ (କ) ପ୍ରଥମ ୧୫ ଦିନ - ସ୍କୁଲ ପିଲାଙ୍କ ଦ୍ୱାରା ସ୍ୱାସ୍ଥ୍ୟ ସଚେତନ ଅଭିଯାନ
ଏଥିପାଇଁ ସ୍କୁଲ ପିଲାଙ୍କ ଭିତରେ ଗୀତ,
ସ୍ଲୋଗାନ, ପୋଷ୍ଟର ତିଆରି ପ୍ରତିଯୋଗୀତା
ସ୍ୱାସ୍ଥ୍ୟ ସମ୍ବନ୍ଧରେ ପିଲାଙ୍କ ଭିତରେ ସ୍ୱାସ୍ଥ୍ୟ ସଚେତନ ଆଲୋଚନାମାଳା
ବକ୍ତୃତା, ପ୍ରବନ୍ଧ, ପ୍ରତିଯୋଗୀତା

ଦ୍ୱିତୀୟ ୧୫ ଦିନ - ସ୍ୱାସ୍ଥ୍ୟସେବୀମାନଙ୍କର ଦ୍ୱିତୀୟ ପର୍ଯ୍ୟାୟ ତାଲିମ,

- ସ୍କୁଲ ପିଲାଙ୍କ ଦ୍ୱାରା ଗାଁରେ ସ୍ୱାସ୍ଥ୍ୟ
ପଦଯାତ୍ରା, ସ୍ୱାସ୍ଥ୍ୟ ସ୍ଲୋଗାନ ଦେବା।
- ସ୍କୁଲ ପିଲାଙ୍କ ଦ୍ୱାରା ଏକାଙ୍କିକା ପ୍ରଦର୍ଶନୀ।

ମାସ -୬ (କ) ପ୍ରଥମ ୧୫ ଦିନ - ଶିଶୁମାନଙ୍କୁ ପ୍ରତିଷେଧକ ଟିକାଦାନ (ତୃତୀୟ ପର୍ଯ୍ୟାୟ)
- ସ୍କୁଲ ପରିମଳ ସପ୍ତାହ ପାଳନ
- ମହିଳା ଓ ଶିଶୁ ସ୍ୱାସ୍ଥ୍ୟ ସପ୍ତାହ ପାଳନ।

(ଖ) ଦ୍ୱିତୀୟ ୧୫ ଦିନ :
- ବିଭିନ୍ନ ସ୍ତରର ସ୍ୱାସ୍ଥ୍ୟ କମିଟିରେ
କାର୍ଯ୍ୟକ୍ରମର ସମୀକ୍ଷା ଓ ନୂତନ ନିଷ୍ପତ୍ତି ଗ୍ରହଣ।
- ଧାଈ ତାଲିମ ବ୍ୟବସ୍ଥା

ମାସ -୭ (କ) ପ୍ରଥମ ୧୫ ଦିନ - ପଞ୍ଚାୟତରେ ଦେଖାଯାଉଥିବା
ରୋଗ ବେମାରୀର ଉପଯୁକ୍ତ ଚିକିତ୍ସା ଓ ନିରାପତ୍ତା
ପାଇଁ ପଦକ୍ଷେପ ଗ୍ରହଣ।

(ଖ) ଦ୍ୱିତୀୟ ୧୫ ଦିନ - ମହିଳାମାନଙ୍କୁ ନଳକୂଅ, କୂଅର ଯତ୍ନ, ଜଳ ପରୀକ୍ଷା ଓ ବିଶୋଧନ ପାଇଁ ତାଲିମ।

ମାସ -୮ (କ) ପ୍ରଥମ ୧୫ ଦିନ - ସ୍ୱେଚ୍ଛାସେବୀ ସ୍ୱାସ୍ଥ୍ୟକର୍ମୀଙ୍କ ତୃତୀୟ ପର୍ଯ୍ୟାୟ ତାଲିମ କାର୍ଯ୍ୟକ୍ରମ।
- ପୁଷ୍ଟିହୀନ ପିଲାଙ୍କ ପାଇଁ ପୋଷକ ଲଡୁ ତିଆରି ଓ ପୋଷକ ଲଡୁ ଖୁଆଇବାର ବ୍ୟବସ୍ଥା।
- ଗାଁରେ ଅତ୍ୟାବଶ୍ୟକ ଔଷଧ ମିଳିବା ବ୍ୟବସ୍ଥା।

(ଖ) ଦ୍ୱିତୀୟ ୧୫ ଦିନ

- ପଞ୍ଚାୟତ ସମିତି, ସ୍ୱାସ୍ଥ୍ୟ ବିଭାଗ ଓ ଆନୁସଂଗିକ ବିଭାଗମାନଙ୍କ ସହ ସ୍ୱାସ୍ଥ୍ୟ ଯୋଜନାର ବାସ୍ତବ କାର୍ଯ୍ୟକ୍ରମ ପାଇଁ ଆଲୋଚନା ଓ କାର୍ଯ୍ୟକ୍ରମ ଗ୍ରହଣ।

ମାସ -୯ (କ) : ଗାଁମାନଙ୍କରେ ସ୍ୱତନ୍ତ୍ର ସ୍ୱାସ୍ଥ୍ୟଦଳ ଗଠନ।

- ଗାଁ ସ୍ୱାସ୍ଥ୍ୟ କମିଟିରେ ସାଧାରଣ ରୋଗ ବେମାରୀର ପ୍ରାଥମିକ ଚିକିତ୍ସା ପାଇଁ ନିଷ୍ପତ୍ତି ଓ ପଦକ୍ଷେପ ଗ୍ରହଣ।
- ସ୍ୱାସ୍ଥ୍ୟପାଇଁ ଥିବା ସରକାରୀ ବେସରକାରୀ ସୁବିଧା ସୁଯୋଗର ଉପଯୋଗ ପାଇଁ ଆବଶ୍ୟକ ପଦକ୍ଷେପ।

୧୦ରୁ ମାସ ୧୮ (କ) ପାନୀୟ ଜଳ ଓ ପରିମଳ ବ୍ୟବସ୍ଥା :

- କୂଅ, ନଳକୂଅ ଆଦିର ମରାମତି ବା ନୂଆ କୂଅ ବା ନଳକୂଅ ଖୋଳିବା।
- ପିଇବା ପାଇଁ ବ୍ୟବହୃତ ହେଉଥିବା ପୋଖରୀର ନିରାପତ୍ତା ବ୍ୟବସ୍ଥା।
- ଜଳ ବିଶୋଧନ କରିବା ପାଇଁ ସ୍ୱତନ୍ତ୍ର ପଦକ୍ଷେପ
- ପ୍ରତି ଘରେ ବା ଆବଶ୍ୟକ ସ୍ଥଳେ ସାମୂହିକ ପାଇଖାନା ବସାଇବା ପାଇଁ ଆବଶ୍ୟକ ପଦକ୍ଷେପ।

(ଖ) ପ୍ରତି ସ୍ତରର ସ୍ୱାସ୍ଥ୍ୟ ସଂଗଠନଗୁଡ଼ିକର ଦୃଢ଼ିକରଣ ପାଇଁ ଆବଶ୍ୟକ ପଦକ୍ଷେପ।

